

# ମହାପାତ୍ରେ ବୁଦ୍ଧି ଶିଖିଲେ

• ଆନନ୍ଦ ଚନ୍ଦ୍ର ପତ୍ରୀ

# ମହାପାତ୍ରେ ବୁଦ୍ଧି ଶିଖିଲେ

ଅନଂଦ ଚନ୍ଦ୍ର ପଣ୍ଡା

[ ଅପବ୍ୟୟ ଓ ଶୋଷଣ ଉପରେ ଆଧାରିତ ଏ ଏକାଙ୍କିକାଟି କଟକ ଦୂରଦର୍ଶନ କେନ୍ଦ୍ରର ପ୍ରୌଢ଼ଶିକ୍ଷା କାର୍ଯ୍ୟକ୍ରମରେ ପ୍ରସାରିତ ]

ଦ୍ୱିତୀୟ ମୁଦ୍ରଣ – ୧୯୮୮

ପ୍ରକାଶିକା : ଅରୁନ୍ଧତୀ ପଣ୍ଡା
ଘର ନଂ -୧୭୯, ଟାଇପ-ଇ
ଇଉନିଟ - ୮, ଭୁବନେଶ୍ୱର

ଚିତ୍ରଶିଳ୍ପୀ : ବଳଦେବ ମହାରଥୀ

ମୁଦ୍ରଣ : ଶ୍ରୀ ଜଗନ୍ନାଥ ପ୍ରେସ

ମୂଲ୍ୟ : ଦଶ ଟଙ୍କା

## ଏକାଙ୍କିକାର ଚରିତ୍ର

* ନରହରି ମହାପାତ୍ର
* ପୁରୋହିତ
* ସରବୋଉ
* ସରସ୍ୱତୀ
* ବାବୁଲି

# ପ୍ରଥମ ଦୃଶ୍ୟ

( ସନାତନର ଘର । ମାଟି ଘର, ଚାଳ ଛପର । ଘର ଆଗରେ ତୁଳସୀ ଚଉଁରା । ସନାତନ ମରିବାର ତିନି ଦିନ ହେଲାଣି । ଦାଣ୍ଡ ପିଣ୍ଡାରେ ଗୋଟିଏ କଡ଼କୁ ପୁରୋହିତ ଓ ତାଙ୍କ ଆଗକୁ ବସିଛନ୍ତି ଗାଆଁ ମହାଜନ ନରହରି । )

ନରହରି - ସନଆଁ ପରି ଲୋକ ଏ ପାଞ୍ଚଖଣ୍ଡ ଗାଆଁରେ ନାହାଁନ୍ତି କି ଜନମ ହେବେନେଇଁ ।

ପୁରୋହିତ - ଏମିତି ମରଣ ଏ ଗାଆଁରେ କେଇଜଣ ମରିଛନ୍ତି ? ଦିନ କେଇଟା ଜର, ସଜଫୁଲପରି ମଣିଷଟା ଆଖି ବୁଜି ହେଲା ।

ନରହରି - ମତେ ଲାଗୁଚି ଏମିତି ସନଆଁ ଜୀଇଚି ।

ପୁରୋହିତ - ମତେ ବି ସେମିତି ଜଣାପଡୁଚି ।

ନରହରି - ସନଆଁକୁ ମୁଁ କେତେ ଭଲପାଏ ତମେ ଜାଣିନା ପୁରୋହିତେ ।

ପୁରୋହିତ - ନୁହେଁ ଆଉ କ'ଣ ?

ନରହରି - ସନଆଁ ଚାଲିଗଲା ମୋର ଡାହାଣହାତଟା ଛିଡ଼ି ପଡ଼ିଲା । ମୁଁ ଭାବିଥିଲି ଏ ବର୍ଷ ସରପଞ୍ଚ ପାଇଁ ତାକୁ ଠିଆ କରେଇ ଥାଆନ୍ତି ।

ପୁରୋହିତ - ଗଲା କଥାତ ଗଲାଣି । ପଛ କଥା ଗୁଡ଼ା ଭାବି ମନ ଦୁଃଖ କଲେ କ'ଣ ହବ ? ତା କାମଟା ସୁରୁଖୁରୁରେ କରିଦେଲେ ସିଏ ସରଗରେ ଥାଇ ଖୁସି ହେବ ।

ନରହରି - (ଗାମୁଛାରେ ଆଖିରୁ ଲୁହ ପୋଛିଲେ) ମନ ସମ୍ଭାଳି ହଉନେଇଁ ପୁରୋହିତେ । ହଉ ଛାଡ଼ ।

ସରବୋଉ, ସାଇବାଲ୍ ଆଉ କିଏ ସବୁ ଆଇଥିଲେ ?

ରବୋଉ – ଧଳଘର ଦାଦା, ନକଡ଼ି ପାତ୍ର, ସାରଙ୍ଗ ବାପା ଶଙ୍କର ସ୍ୱାଇଁ ।

ରହର – ସନିଆଁ ର କାମ କେମିତି ଉଠିବ, ସେ ସବୁ କିଛି କହୁଥିଲେ ?

ରୋହିତ – ମୁଁ ପରା ଜାଣେ । ଏ ସାଇବାଲ୍ ଖାଲି କୁହା ମୁଣ୍ଡିଆ ଭଗିଆ । ସେ ଦିନ ଦେଖିଲ ନେଇଁ, ସନିଆଁ ମରିକି ପଡ଼ିଛି , ସମସ୍ତେ ଆସିଲେ ଦେଖିଲେ, ନିଜ ନିଜ ଘରକୁ ଗଲେ । କିଏ ଜଣେ ହେଲେ ମୁଣ୍ଡ ଦେଖେଇଲ୍ କି ? ଆପଣ ଥିଲେ ବୋଲି କାମଟା ସୁରୁଖରୁରେ ଉଠିଗଲା । ନହେଲେ ସରବୋଉ ମାଇପି ଲୋକ କ'ଣ ଭଲା କରିଥାଆନ୍ତା ?

ରହର – ମୁଁ କିଏ ? ଭଗବାନ ବଡ଼ ଲୋକ । ତାଙ୍କର ଆଜ୍ଞାରେ ଦୁନିଆ ଆଉଯାଉ ।

ରୋହିତ – ଏ ବରଷା ଦିନରେ ସରବୋଉ କୋଉଠୁ କାଠ ଆଣିଥାଆନ୍ତା ? ସେଦିନ ଆପଣ ନିଜ ବାଡ଼ିରୁ କାଠ ବାହାର କଲେ ବୋଲି ଏ ସାଇବାଲ୍ ଅଣ୍ଡିର ପୁଅ ଉଦ୍ଧବ ସବୁ ବାହାରିଲେ । ଶବ ପୋଡ଼ା, ରୋହିଣୀତଳା ସବୁ ସୁରୁଖୁରୁରେ ହୋଇଗଲା । ଯାହା କୁହନ୍ତୁ, ଆପଣ ନ ବାହାରି ଥିଲେ ସାଇବାଲ୍ କେହି ଧସିଛୁଆଁ ଦେଇ ନଥାନ୍ତେ ।

ରହର – ହଁ , ମୁଁ ସାଇବାଲ୍ଙ୍କୁ ଗୋଟି ଗୋଟିକି ଚିହ୍ନିଛି । ସେମାନେ ସବୁ ସୁଖର ସାଥି । ବିପଦ ବେଳେ

କାନ୍ଧ ପଡ଼ିଲେ ସାହାଯ୍ୟ କରିବା ପରି ଜଣେ ଲୋକ ମୁଁ ଦେଖୁ ନେଇଁ ।

ପୁରୋହିତ - ସେଇଆ ନୁହଁ ଆଉ କଣ ? ଆପଣଙ୍କ ପରି ବିପଦ ଆପଦ ବେଳେ ଠିଆ ହେବା ଲୋକ ଏ ଗାଆଁରେ କ'ଣ ଏ ପାଞ୍ଚ ଖଣ୍ଡ ଗାଆଁରେ ନାହିଁ ।

ନରହରି - ସେ କଥା ଛାଡ଼ ପୁରୋହିତେ । ଏଇନେ କ'ଣ କେମିତି କରାଯିବ କୁହ ।

ପୁରୋହିତ - ମୁଁ କ'ଣ କହିବି ? ସରବୋଉକୁ ପଚାରନ୍ତୁ ସିଏ କ'ଣ କେମିତି କରିବାକୁ ଚାହୁଁଛି, ତାଠୁ ଆଗ ବୁଝନ୍ତୁ ।

ନରହରି - ପୁରୋହିତେ ତମେ କ'ଣ ବାଇଆ ହେଲ ? ସିଏ ମାଇପି ଲୋକ, ସିଏ କ'ଣ ଜାଣିଛି ? ତା ଛଡ଼ା ତା ମନର ଅବସ୍ଥା ଯାହା ସେଥିରେ ସିଏ କ'ଣ କହିବ ?

ସରବୋଉ - ମୁଁ ଏ ସବୁ କଣ ଜାଣେ ? ଆପଣ ଯାହା ଭଲ ଭାବିବେ ସେମିତି ବନ୍ଦୋବସ୍ତ କରିବେ । ମୁ କ'ଣ କରିବି ?

ନରହରି - ଲେଖ ପୁରୋହିତେ, ମୁଁ ଯାହା ଡ଼ାକୁଛି ଲେଖ । ମାଲ ଭାଇ ଲୁଗା ··· ଆଚ୍ଛା ସରବୋଉ କିଏ କିଏ ମାଲ ଭାଇରେ ଯାଇଥିଲେ ? ପରିଆ, ହରିଆ, ପାଣୁଆ, ବୋଧିଆ, ମକରା, ମୁରଲୀ, ନକଡ଼ି, ବସନ୍ତ, ଶାରଙ୍ଗ, କୁଳିଆ, ଜଳିଆ ସୁରିଆ, ଆଉ କିଏ ?

ସରବୋଉ - ବାବାଜି ଆଉ ପଦିଆ ।

ନରହରି - ହଁ, ଏତକଣ ? ମୋଟ କେତେ ଜଣ ହେଲ ପୁରୋହିତେ ?

ପୁରୋହିତ - ତେରଦ ଜଣ ।

ନରହରି - ଲେଖ ମାଲ ଧରି ଲୁଗା ୧୪ଟା । ଧୋବା ଆଉ ବାରିକ ଲୁଗା । ଆଉ କ'ଣ ରହିଲା ?

ପୁରୋହିତ - କିଛିତ କହୁ ନାହାଁନ୍ତି ।

ନରହରି - ଲୁଗା କେତେ ଲାଗିବ ଆଗେ ତାଲିକା କର । ଆଉ ସବୁ ଜିନଷ ସ୍ଥା'ପରେ ଗୋଟି ଗୋଟିକ ଲେଖିବା । ସରବୋଉ ଘରେ ଅଣ୍ଡା ପାଣି ଅଛିକି ?

ସରବୋଉ - ସର ! ଏ ସର ! କୁଆଡେ଼ ଗଲୁକି ?

ସରସ୍ୱତୀ - (ଘର ଭିତରୁ କ'ଣ ବୋଉ ?

ସରବୋଉ - ମୋଉସାଙ୍କ ପାଇଁ ପାଇଁ ପାଣି ଗଲାସେ ଆଣିଲୁ ମାଆ ।

ସରସ୍ୱତୀ - (ଘର ଭିତରୁ) ନେଉଚ ବୋଉ ।

ପୁରୋହିତ - ବନ୍ଧୁ ବାନ୍ଧବମାନଙ୍କୁ ତୁଠ ନିମନ୍ତ୍ରଣ କଲେ ସେମାନଙ୍କ ପାଇଁ ଲୁଗା ଯୋଡ଼ ଲାଗିବ । ସରବୋଉ ! ତମର ବନ୍ଧୁ ସବୁ କିଏ, କହୁନା କାହିଁକି ?

ସରବୋଉ - ସ୍ୱାଙ୍କର ମାମୁଁ ଘର, ତିନି ଭଉଣୀ ଘର, ଆଉ ଆମ ଘର ।

ପୁରୋହିତ - ଏମିତି ଛଏ ହେଲା ପାଞ୍ଚ ଯୋଡ ଲୁଗା ।

ନରହରି - ସନଆଁ ଭ ତନି ଭଉଣୀପାକ ଆସିବେ । ସେମାନଙ୍କ ପାଇଁ ଶାଢ଼ି ତିନି ଖଣ୍ଡ ଲେଖ । ତାଙ୍କ ପୁଆଙ୍କ ପେଇଁ ଜାମା ପେଣ୍ଟ ଲେଖ ।

[ ସରସ୍ୱତୀ ଏତକ ବେଳେ ଗୋଟିଏ କଂସା ଗ୍ଲାସରେ ପାଣି ଧରି ଆସିଛ । ସରର ବୟସ ୧୭ ବର୍ଷ । ପୁରୋହିତ ଓ ନରହର ସରକୁ ଚାହିଁଲେ । ନରହର ସରସ୍ୱତୀକୁ ଲକ୍ଷ୍ୟ କରି କହିଲେ ]

ଆଣ, ମାଆ ଏଇଠିକି ଆଣ । [ ସରସ୍ୱତୀ ପାଣି ଗ୍ଲାସଟି ବଢାଇ ଦେଲା । ସରସ୍ୱତୀକୁ ଲୋଭିଲା ଆଖିରେ ଚାହିଁଲେ ନରହର । ପାଣି ପିଇସାରି ଖାଲି ଗ୍ଲାସଟି ଫେରାଇ ଦେଲେ । ସରସ୍ୱତୀ ଗ୍ଲାସଟି ଧରି ଚାଲିଗଲା । ]

ପୁରୋହିତ - ଆଜି ସେଇ ଲୁଗା ଭାଲିକାଟା ହେଇଥାଉ । କାଲି ଆଉ ସବୁ ଭାଲିକା କରିବା ।

ନରହର - ମୋର ବି ଢେଣେ କାମ ଅଛି । ସରବୋଉ ! ଆଉ ଯାହା ରହିଲା କାଲି କରିବା । ହଉ ଉଠ ପୁରୋହିତେ ! ( ପ୍ରସ୍ଥାନ )



# ଦ୍ୱିତୀୟ ଦୃଶ୍ୟ

(ସରବୋଉ ଖଣ୍ଡେ ଦୂରରେ ବସିଛି । ନରହରି ମହାପାତ୍ର ଓ ପୁରୋହିତ ପୂର୍ବ ଦିନ ପରି ତାଲିକା ଲେଖୁଛନ୍ତି ।)

ପୁରୋହିତ - ଏତେତ ସାରିବ, କୁଟୁମ୍ବ ଭାଇମାନଙ୍କ ପେଇଁ ଯୋଡ଼େ ଲେଖା ଲୁଗା ନ କରିବ କାହିଁକି ? ସେମାନେ ପଦେ କହିବାକୁ ବାଟ ରଖିବ କାହିଁକି ?

ନରହରି - ଯେତେବେଳେ ସେମାନେ କୁଟୁମ୍ବ ଭାଇ ନ କଲେ ସେମାନେ କ'ଣ ଭାବିବେ ? କଥାଟା ସୁନ୍ଦର ହେବ ନାହିଁ । କ'ଣ କହୁଚ ସର ବୋଉ ?

ସରବୋଉ - ଆପଣ ଯାହା ଭଲ ଭାବୁଛନ୍ତି କରନ୍ତୁ ।

ପୁରୋହିତ - କର୍ମ ଉପରେ ଆଉ ତିନି ଯୋଡ଼ ଧୋତି, ତିନି ଖଣ୍ଡ କରିଆ ଆଉ ଖଣ୍ଡେ ସପ ଦରକାର । ସରବୋଉର ଖଣ୍ଡେ ଧଳା ଶାଢ଼ୀ । ଏମିତି ଗାଏ ମୋଟ ଧୋତି ୨୭ ଯୋଡ଼, ଶାଢ଼ି ପାଞ୍ଚଟା ଆଉ ପିଲାଙ୍କ ଜାମା ପେଣ୍ଟ ।

ନରହରି - ପିଲା କେଇଟା ହେଲେ ?

ସରବୋଉ - ଗେଲ୍ହାର ଦୁଇଟା ପୁଅ, ତିନୋଟା ଝିଅ । ମଲ୍ଲୀର ଗୋଟିଏ ଝିଅ । ଆଉ ଶୋଭ୍ଲୀର ତିନୋଟି ପୁଅ, ଗୋଟେ ଝିଅ ।

ନରହରି - ଭଲକି ହିସାବ କରି ଲେଖ ପୁରୋହିତେ ।

ଭାଗ କେହି ଲୋକ ନାହାଁନ୍ତି, ଯାହା ଆସିବ ଏକା ଥରେ । କାମ ମଝିରେ କହିଲେ ହାଟକୁ ଦଉଡ଼ ଯାଇ ଜିନଷଟେ ଆଣିବା ପାଇଁ ଲୋକ ନାହିଁ । ଗୋଟେ ଅଧେ ବଳ ପଡ଼ିଲେ ପଛକେ ବଳୁ । ଘର କାମରେ ଲାଗିବ ।

ପୁରୋହିତ - ତେବେ ଆଉ ଗୋଟେ ଜୋଡ଼ ଧୋତି, ଗୋଟେ ଶାଢ଼ି ଅଧିକା ଲେଖୁଛି । ଅଣ୍ଟେ ନଅଣ୍ଟେ ହେଲଥିରୁ ମେଣ୍ଟିବ ।

ନରହର - ହଉ ହେଲା । ଗୋଟେ କାହିଁକି, ଦି, ଦିଟା ଅଧିକା ଲେଖିଥା । ବଳିଲେ କଣ ପଚି ଯାଉଚି ? ଏତ ଗଲା ଲୁଗା ପଟା କଥା । ଆଉ ସବୁ ଜିନଷ କଣ ଲେଖ ।

ପୁରୋହିତ - କର୍ମ ଉପରେ ନଡ଼ିଆ ଦଶଟା, ଅରୁଆ ଚାଉଳ ଦଶ ସେର, ଉଷୁନା ଚାଉଳ ଦଶ ସେର, ପିତଳ ଗିନାଟେ, ପିତଳ ଥାଳିଟେ, ଦଶ ହାଣ୍ଡି, ପଲମ, ପଇତା ଡଉଁଶ ସଙ୍ଗାଡ଼ି, ଶାଳ କାଠ, ଗୁଆ ଘିଅ ଅଧସେରେ, ଦୁବ ବରକୋଳି ପତର, ହଳଦୀ ବସନ୍ତିଆ ଠେକ ଦୁଇଟା, ଦାନ ଦେବାକୁ ଜଂଘା ବାହନ ଗୋଟେ ହଜ, ସପ, ଛତିଆ, ଗୋରୁ, ଲୁଗା, ଭୂମି, ସୁନା ।

ନରହର - ହଇ ହୋ ପୁରୋହିତେ । ଘରବୋଉ କ'ଣ ଭୂମି ଗୋରୁ' ସୁନା ଏସବୁ ଦାନ ଦେଇ ପାରିବ ?

ପୁରୋହିତ - ଯାହା ଶାସ୍ତ୍ର ଡାକୁଚି ମୁଁ ସେ କଥା କହିଲି । ତେଣିକି ଯା ପାରିବା ପଣକୁ ଚାହିଁ ସିଏ ଯାହା ଦେବ ।

ନରହରି - ଆଉ ଘିଅ ଅଧ ସେରେ ଯାହା କହୁଚ ତା'ଠୁ କମ୍ ହେଲେ ଚଳିବ ନେଇଁ ?

ପୁରୋହିତ - ପୁଷ୍କର ଶାନ୍ତ ହବ । ଘିଅ ନହେଲେ କେମିତି ହେବ ?

ନରହରି - ଅଧ ସେର ନହେଲେ ଚଳିବ ନେଇଁ ?

ପୁରୋହିତ - ସିଏ ଯୋଗାଡ଼ କରୁ । ସେତେବେଳକୁ ଯାହା ହବ ଦେଖିବା ।

ନରହରି -ଇଏତ ଗଲା କର୍ମ କଥା । ବ୍ରାହ୍ମଣ ଭୋଜନ ଆଉ ଜ୍ଞାତି ଭୋଜନ ?

ପୁରୋହିତ - ବ୍ରାହ୍ମଣ ଭୋଜନ ପାଇଁ ଦହି, ଚୁଡ଼ା, ଗୁଡ଼, କରିପାରନ୍ତି, ନହେଲେ ଆଜି କାଲି ହେଲାଣି ପୁରୀ, ତରକାରୀ ପାଆସ, ବୁନ୍ଦି, କଦଳୀ, ମିଠା କଲମି ଆମ୍ବ ଆଉ ବସାଦହି । ପାଆସଟା ଗୁଡ଼ଉଲରେ ହେଲେ ସାସେନଆଁ ବ୍ରାହ୍ମଣ ବାରିବେ । ସୁଜି ପାଆସ କରିଦେଲେ ଆଉ କାହାର କିଛି କହିବାର ନଥିବ ।

ନରହରି - ତମେ କ'ଣ କହୁଚ ବ୍ରାହ୍ମଣ ଭୋଜନ ପାଇଁ ପ୍ରକାରେ କରି ଜ୍ଞାତି ଭୋଜନ ପାଇଁ ନଆରି କରିବା ? ଏତେ ଛିଟିକୁଟ କରିବାକୁ ଲୋକ ନାହାଁନ୍ତି ? ମୁଁ କୋଉଚି ସେଇ ପୁରୀ, ତରକାରୀ ପାଆସ, ବୁନ୍ଦି, କଦଳୀ, ଦହି କରିଦବା ଯେ ବ୍ରାହ୍ମଣ ଭୋଜନ ହବ, ଜ୍ଞାତି ଭୋଜନ ହବ । କ'ଣ କହୁନ ?

ପୁରୋହିତ - ହଁ, ହେ । ଏତେ ଅଡ଼୍ଆରେ କିଏ ପଶୁଛି ?

ନରହରି - ତାହେଲେ ଲେଖ - ଅଣ୍ଟା ଦ ବସ୍ତା' ଆଚ୍ଛା ପୁରୋହିତେ ଆମ ଗାଆଁର ସବୁ ଲୋକଙ୍କୁ ତ ଖାଇବାକୁ ଦେଇ ହବ ନେଇଁ । ଆମ ଗାଆଁରେ ନିହାତି ପକ୍ଷେ ଦ' ହଜାରେ ଲୋକ ହେବେ ନେଇଁକି ?

ପୁରୋହିତ - ନାହିଁ ଆଉ କ'ଣ ?

ନରହରି - ତେବେ କେବଳ ଆମ ସାଇ ଲୋକଙ୍କୁ ହିସାବ କର । ଆମ ସାଇରେତ ବଡ ମଣିଷ ତିନିଶହରୁ ବେଶୀ ହେବେ । ତମେତ ଜାଣିଚ ଘରକା ଜଣେ ଲେଖାଏଁ ଡାକିଲେ ଛଅ ପଲ୍ ପାଞ୍ଚ ଛଅ ଧର ପହଞ୍ଚିବେ । ଅଧିକ କିଛି ନ ଆଣିଲେ ସେତେବେଳେ ହଇରାଣ ହେବା ।

ପୁରୋହିତ - ତେବେ ପାଆଁଶ ଲୋକଙ୍କ ପେଇଁ ହିସାବ କରିବା ।

ନରହରି - ଲେଖ ଅଣ୍ଟା ଦ ବସ୍ତା, ଘିଅ ବ ଟିଣ, ଛେଦଣା ପନ୍ଦର କିଲୋ, ସୁଜି ଦଶ କିଲୋ, ଚିନି ତିରିଶି କିଲୋ, ଦୁଧ ପନ୍ଦର ସେର' କଦଳୀ ଦ କାନ୍ଦି, ବାଇଗଣ ପଲେଇ ଆମ୍ବ ତିନି ଝୁଡ଼ି, କିସାବନ୍ଧ ଦଶ ସେର, ଆଳୁ ଗୋଟେ ପାକିଟି, ବାଇଗଣ ପଚିଶି କିଲୋ, ବୁଟ ଡ଼ାଲି ଦଶ କିଲୋ, ପୁଟଳ ପନ୍ଦର କିଲୋ, କଖାରୁ ପାଞ୍ଚଟା, ମାଟି ଆଳୁ କୋଡ଼ିଏ କିଲୋ ।

ପୁରୋହିତ - କିଛି ଚୁଡ଼ା ଆଉ କିଛି ଉଖୁଡ଼ା କରିବା । କାହାକୁ କେମିତି କଲଖିଆ ଦେବାକୁ 'ହବ । ଏତକ ଥିଲେ ସବୁ କାମ ଚଳେଇବ ।

ନରହର - ଏଇଠିକି ଆସିଲ ସରବୋଉ । ହଁ, ହଁ, ସେଇଠି ବସ । ଏଇ ଯାହାସବୁ ତାଲିକା ହେଲା ଏତକ ନିହାତି ଦରକାର । ଆଜି କାଲି ଜିନିଷର ଦରଦାମ ଯାହା ହେଲାଣି ତମେ ଜାଣିଚ । ଏତକ ପାଇଁ ଆନୁମାନିକ ପାଞ୍ଚ ହଜାର ଟଙ୍କା ଲାଗିବ ।

ସରବୋଉ - (ନିରବ)

ନରହର - କ'ଣ କହୁଚ, ଗୋଟି ଗୋଟିକି ସବୁ ହିସାବ କଷିବା ?

ସରବୋଉ - ନାଇଁ ସାଆନ୍ତେ ମୁଁ ସେ କଥା କହୁନେଇଁ ।

ନରହର - ତେବେ ଆଉ କ'ଣ କହୁଚ ?

ସରବୋଉ - ଏତେ ଟଙ୍କା !

ନରହର - ସେଥିଁଠୁ କମ୍ ହେଲେ ଜମା ହେବନେଇଁ ।

ପୁରୋହିତ - ଉପରି ନଥିଲି କଥା ବୋଲି ସବୁ ଠିକେ ଠିକେ ହିସାବ ହେଉଚି । ଏଥିରୁ କେଉଁଟା କାଟିବ କାଟ ।

ସରବୋଉ - ଘରେତ ଗୋଟେ ବୋଲି ପଇସା ନାହିଁ । ଧାନ ଚାଉଳ, ସୁନା, ରୁପା, କ'ଣ ଅଛି ଯେ ବିକି ଭାଙ୍ଗି କାମ ଉଠେଇବ ?

ନରହର - ତମେ ବେସ୍ତ ହୁଅନା ସରବୋଉ । ମୁଁ ଥାଉଁ ଥାଉଁ ସନିଆଁର କାମଟା ବାକି ରହିବ ? ଯାହା ଯେତେ ଦରକାର ହବ ମୁଁ ଦେବି ।

ସରବୋଉ - ରୋଜଗାର କରୁଥିବା ଲୋକତ ଚାଲିଗଲା (କାନ୍ଦ କାନ୍ଦ ହୋଇ) ଏତେ ଟଙ୍କା ମୁଁ କେମିତି ଶୁଝିବି ?

ନରହର - କାମଟା ଆଗେ ସରିଯାଉ । ତମେ କୁଆଡ଼େ ପଳଉଚ ନା ମୁଁ ଏ ଗାଁ ଛାଡ଼ି ଚାଲିଯାଉଚି ?

ସରବୋଉ - ଘରର ଗୋଟେ ବଡ଼ିଲି ଝିଅ ସାଙ୍ଗକୁ ଦ' ଦ'ଟା ବଷ୍ଟର ଛୁଆ । ତାଙ୍କୁ ଚଳେଇବ କେମିତି ? ମୋର କ'ଣ ଅଛି ? କେମିତ ଶୁଝିବ ?

ନରହର - ତମେ ଦେଇ ପାରିବ ନେଇଁ ତ ? ହେଲା, ମୁଁ ବ ସେଥିରେ ରାଜି । କାମଟା ଆଗେ ଉଠୁ ।

ସରବୋଉ - ଏ ଗାଆଁ ଲୋକଙ୍କ କଥା କ'ଣ ସାଆନ୍ତେ ଯାଣି ନାହାଁନ୍ତି ' ବାର ଲୋକ ବାର କଥା କହିବେ । ସଜ ଗୋବରରେ ଅଁଶେଇ ପକାଇ ଦେବେ ।

ପୁରୋହିତ - ଆଜ୍ଞା ଆପଣ ସିନା ମହତ ପଣିଆ ଦେଖେଇ ଏ କାମ କରିବାକୁ ଯାଉଛନ୍ତି, ହେଲେ ଲୋକଙ୍କ ଆଖି ଖୋଜ ବୁଲିବ ମଇଳା । ସେମାନେ କହିବେ—ସ୍ୱାର୍ଥ ନଥାଇ ଏତେ ଗୁଡ଼େ ଟଙ୍କା କିଏ କାହାପାଇଁ ଖରଚ କଲିଣି ? ସ୍ତ୍ରୀ' ଭିତରେ କିଛି ଗୋଟେ ଅଛିନା ।

ନରହର - ତା ହେଲେ ତୁମେ କ'ଣ କହୁଚ ପୁରୋହିତେ ?

ପୁରୋହିତ - ଗାଆଁ ଲୋକଙ୍କ ଆଖି ଦେଖିଲି ଭଲ ମନ ବୁଝିବା ଭଳି କିଛି ଗୋଟାଏ କରିବାକୁ ହବ । ଗୋଟେ କାମ କରୁନାହାଁନ୍ତି ।

ନରହର - କ'ଣ କହୁନା ।

ପୁରୋହିତ - ସନଆଁର ଜମି ଦ'ମାଣକ ବନ୍ଧକ ରଖି ଆପଣ ଟଙ୍କା ପାଞ୍ଚ ହଜାର ଦିଅନ୍ତୁ । ଲୋକେ ଆଉ କିଛି କହିବାର ବାଟ ନଥିବ ।

ଉ - ଜମି ଦ'ମାଣ ଦେଇ ଦେଲେ ମୁଁ କେମିତି ଚଳିବ ?

ତ - ତମେତ କୋଉ କଥାକୁ ରାଜି ହବନେଇଁ କାମ କେମିତି ଉଠିବ ?

- ସରବୋଉ ! ତମର ସବୁ କଥାରେ ମୁଁ ରାଜି । ମୁଁ ତମକୁ ମାହାଳିଆ ଟଙ୍କା ଦେବ ନେଇଁକି ଜମି ବନ୍ଧକ ରଖିବ ନେଇଁ । ସନାତନର କାମ ଛଏବ ବାକି ରହିବ ନେଇଁ ।

ଡ - ଇଏ କେମିତି କଥା ? ଆପଣ କ'ଣ ମେଜକି କାଣିଚନ୍ତି କି ?

- ହଁ, ପୁରୋହିତେ. ତମେ ଦେଖ । ନାଆଁକୁ ମାତ୍ର ମୁଁ ବନ୍ଧକ କାଗଜଟା ଲେଖେଇ ନେବ । ଏ ବନ୍ଧକ କେବଳ ଗାଆଁ ଲୋକଙ୍କ ମୁହଁବନ୍ଦ କରିବା ପେଇଁ । ଜମି ତାଙ୍କରି ସିଏ ଚାଷ କରି ଖାଇବେ, ମତେ କିଛି ଦବାକୁ ପଡ଼ିବ ନାହିଁ । କ'ଣ ସରବୋଉ ! ଏଥିରେ ରାଜିତ ?

ଡ - ଆପଣ ଆଜ୍ଞା ସେଇଆ କରନ୍ତୁ, ସରବୋଉ କଥା ରହିବ ଆଉ ଗାଆଁ ଲୋକଙ୍କ ମୁହଁ ବନ୍ଦ ହେବ ।

- ସରବୋଉ ! କ'ଣ କହୁଚ କୁହ ।

ଭ - ମୁଁ ଆଉ କ'ଣ କହିବ ? ଯାହା ହଉ ପଛକେ ତାଙ୍କ କାମଟା ଭଲରେ ହେଉ ।

- ତମେ ଏଣିକି ଦମ୍ଭ ହେଇକି ବସ । ମୁଁ ସବୁ ଠିକ୍ ଠାକ୍ କରି ଦଉଚି ।

ର - (କଇଁ କଇଁ ହୋଇ କାନ୍ଦି ଉଠିଲେ)

ନରହର - ଯାହାର ହେବାର ହେଲାଣି । ତମେ ଏ
ମୁଣ୍ଡ ବାଡ଼େଇଲେ ସିଏ କ'ଣ ଆଉ ଫେ
ଆସି ?

ପୁରୋହିତ - ଚାଲନ୍ତୁ ଆଜ୍ଞା । ଏଣେ ମୋର ଅନେକ
ପଡ଼ିଛି । ନଧିଆ ଘରେ ଗୋଟେ ଶ୍ରାଦ୍ଧ, ଦ
ଘରେ ଗୋଟେ ମେଳା, ଜଗମନ ଘରେ ଠାକୁ
ପୂଜା । ଗୋଟେ ମଣିଷ ମୁଁ କୋଉ ଆଡ଼
ହେବି ?

ନରହର - ହଉ, ତ [illegible] । (ପ୍ରସ୍ଥାନ



## ତୃତୀୟ ଦୃଶ୍ୟ

[ ସରବୋଉ କାନ୍ଦୁଥିଲେ । ସାନ ପୁଅ ବାବୁଲା ବୋଉର ଶାଢି ଧରି ଟାଣୁଚି । ଖାଇବାକୁ ଦେବାକୁ ଅଳି କରୁଛି ]

ବାବୁଲା - ବୋଉ ! ବୋଉ! ଏ ବୋଉ !

ସରବୋଉ - (ବେଶୀ, ବେଶୀ କାନ୍ଦିଲେ)

ବାବୁଲା - ବୋଉ ମତେ ଭୋକ ହେଲାଣି କ'ଣ ଦେ
ଖାଇବି ।

ସରବୋଉ - (ସେମିତି କାନ୍ଦୁଥିଲେ)

ବାବୁଲା - ବୋଉ !( ଲୁଗା କାନି ଧରି ଟାଣିଲା ) ଏ
ବୋଉ ! ମତେ ଧିରି ଭୋକ ହେଲାଣି । ପେଟି

ଲୁଗା ଭିଡ଼ୁଛି । ନଶୁଣିବାରୁ କାନ୍ଦିବାକୁ ଆରମ୍ଭ କରନ୍ତି । ଏଁ... ...ଏଁ...... ମତେ .... ଭୋକ ..
ହେଲାଣି ।

ସରବୋଉ - ଆଖିରୁ ଲୁହ ପୋଛି ଓ କାନ୍ଦ ବନ୍ଦ କରି ଯା, ବୋଷେଇ ଘରେ ମୁଢ଼ି ଅଛି ଖାଇବୁ ।

ବାବୁଲି - ନାଇଁ ମୁଁ ମୁଢ଼ି ଖାଇବି ନେଇଁ ।

ସରବୋଉ - ଆଉ କ'ଣ ଖାଇବୁ ?

ବାବୁଲି - ଭାତ ଖାଇବି ।

ସରବୋଉ - ଭାତ କ'ଣ ରନ୍ଧା ହୋଇଚି ?

ବାବୁଲି - ପାଚ କେମିତି ଖାଇଲି ?

ସରବୋଉ - କାଲିଠୁ ପଖାଳ ଭାତ ଟିକେ ଥିଲା । ସିଏ ଖାଇ ଦେଲି । ଆଉ ନାହିଁ । ତୁ ଆମର ସୁନା ପିଲା, ଯା, ମୁଢ଼ି ଖାଇ ଦବୁ ।

ବାବୁଲି - ଏଁ ଏଁ ... (କାନ୍ଦିଲା) ନାଇଁ ମୋର ଭାତ ଖାଇବି ।

ସରବୋଉ - କହୁଚି ପା ଭାତ ନାହିଁ ।

ବାବୁଲି - ମୁଁ ପା କହୁଚି ମୁଢ଼ି ଖାଇବି ନେଇଁ ।

ସରବୋଉ - ନ ଖାଇଲେ ନଖା । ଯା' ଖେଳିବୁ ଯା ।

ବାବୁଲି - ଭୋକରେ ମୋ ପେଟ କ'ଣ ହୋଇ ଯାଉଚି (ପେଟ ଦେଖାଇ) ଦେଖୁନୁ ମୋ ପେଟ କେମିତି ଖାଲି ପଡ଼ୁଛି ।

ସରବୋଉ - ଆଜି ରାତିକି ଚାଉଳ ଆଣିବା, ଭାତ ରାନ୍ଧି ଦେବି । ତୁ ଖାଇବୁ । ଏକା ମୋ ପୁଅ ଖାଇବ ପାରିବୁ ଜମା ଦେବି ନେଇଁ । ଯା' ମୁଢ଼ି ଖାଇବେ ।

ାବୁଲା - (ବୋଉ ମୁହଁକୁ ଚାହିଁଲା) ତୁ ସତ କହୁଚୁ ?
ମତେ ଏକା ଦବୁ, ପାରକୁ ଦବୁନଇଁ ?

ରବୋଉ - ହଁ, ସତ କହୁଚ । ଏକା ତତେ ଦେବ, ପାରକୁ ମୋଟେ ଦେବ ନେଇଁ । ମୋ ସୁନା ପୁଅଟା ଯା ମୁଢ଼ି ଖାଇ ଦେଇ ଖେଳବୁ ।
[ ବାବୁଲା ଖୁସି ହୋଇ ଦୌଡ଼ିଇ ଘରକୁ ଧାଇଁଲା । ସରବୋଉ ତ ର ଗତ ପଥକୁ ଛଳ ଛଳ ଆଖିରେ ଅନେଇ ଥିଲେ । ସଙ୍ଗେ ସଙ୍ଗେ ଗୋଟିଏ ଖାଲି ଟୋପି ଧରି କାନ୍ଦି କାନ୍ଦି ଫେରିଲା । ]

ସରବୋଉ - କ'ଣ ହେଲା ? କାନ୍ଦୁଚୁ କାଇଁକି ?

ବାବୁଲା - ମୁଢ଼ିକି ପାରି ଖାଇ ଦେଇଚ କାନ୍ଦ ାନ୍ଦ ହୋଇ କହିଲା

ସରବୋଉ - ଖାଇ ଦେଇଚ ? ତୁ କେମିତ ଯାଇଁଲୁ ?

ବାବୁଲା - ମୁଁ ଗଲାବେଳକୁ ସି ାଉଥିଲା । ମତେ ଦେଖିକି ଦୋଉଡ଼ିକି ପଳାଇଲା । ପ୍ରତ ଖାଇଲା ମୁଢ଼ି ଇଲା । ମୋ ଟେଇଁ ଛ ରଖିନେଇଁ । ଖାଲି ଟୋପିଟାକୁ ଫିଙ୍ଗିଦେଲା । ଟୋପିଟା ସରବୋଉର ଗୋ ତଳେ ଡ଼ିଲା ।) ମୁଁ ଆଜ ପାରକୁ ବାଡେଇ ବାଡ଼େଇ ମାରିଦେବ ।

ସରବୋଉ - କୁଆଡ଼େ ଗଲାସେ ସବାଖାଇ ?

ବାବୁଲା - ବାରିଆଡ଼େ ପଳେଇଲା ।

ସରବୋଉ - ଚାଲିଲୁ ଦେଖିବା କୁଆଡ଼େ ଗଲା ।
[ ବାବୁଲା ଆଗେ, ଆଗେ ସରବୋଉ ତା ପଛେ ପଛେ ଘର ଭିତରକୁ ଗଲେ ।



## ଚତୁର୍ଥ ଦୃଶ୍ୟ

[ ଆଗ ପଛ ହୋଇ ସରବୋଉ ଓ ବାବୁଲ୍ ଅସୁଥିଲେ । ]

ସରସ୍ୱତୀ - (ସେମାନଙ୍କୁ ଅଟକାଇ) କ'ଣ ହେଲା ? ଏମିତ ତଡ଼ା ତଡ଼ି ହେଇ କୁଆଡେ ଯାଉଚ ?

ବାବୁଲ୍ - (ହାତ ଦେଖାଇ) ପାର ନୁହେଁ, ଏଇଆଡେ ପଳେଇଲା ।

ସରସ୍ୱତୀ - କ'ଣ ହେଲା ବୋଉ ? ପାରକୁ କାହିଁକି ଗୋଡ଼ାଉଚ ?

ସରବୋଉ - ବାବୁଲ୍ ଯେଉଁ ମୁଢ଼ି ରଖିଥିଲ ପାର ତାକୁ ଖାଇଦେଇ ପଳାଇଲା ।

ସରସ୍ୱତୀ - ସିଏ ଆଉ କ'ଣ ଅଛି ଯେ ତାକୁ ଧରିବୁ ? ସିଏତ କୁଆଡ଼େ ନାଇଁ କୁଆଡ଼େ ପଳେଇଲାଣି ।

ସରବୋଉ - ଯେତେବେଳେ ବାଟ ଯିବ ଯାଉ । ଆଜ ତାର ଦିନେକି ମୋର ଦିନେ ।

ସରସ୍ୱତୀ - ରହମ ଏତେ ଗରମ କାହିଁକି ହଉଚ ? ମୁଢ଼ି ଦିଇଟାତ ଖାଇ ଦେଇଛି କ'ଣ ଏମିତ ଭୁଲ କାମଟେ କରି ପକେଇଚ ? ବାବୁଲା ନେ [ଲୁଗା କାନିରୁ ଦଶ ପଇସି ଶୋଟିଏ ଫିଟାଇ ବଢ଼ାଇଦେଲା]

ବାବୁଲ୍ - ଦେଇ ! ତୁ କୋଉଠୁ ପଇସା ଆଣିଲୁ ?

ସରସ୍ୱତୀ - ତୁ ସେଥିରୁ କ'ଣ ପାଇବୁ ? ନେ, ମୁଢ଼ି କିଣିକି ଖାଇଦେବୁ ।

ବାବୁଲ୍ - ଦଶ ପଇସାରେ ମୋ ପେଟ ପୂରିବ ନାହିଁ ।

ସରସ୍ୱତୀ - ହଉ ତୁ ନନେ । (ପୁଣି ଦଶ ପଇସିଟିକୁ କାନରେ ବାନ୍ଧି ଦେଲା ) ତୁ ସେମିତ ବୋଉ ପାଖରେ କାନ୍ଦୁଥା । ପେଟେ କାନ୍ଦିଲେ ତୋ ପେଟ ପୂରିଯିବ ।

ସରବୋଉ - ହେ.ମ ଛୁଆଟା ସାଙ୍ଗରେ ଏମିତ ନଗେଇଛୁ କାହିଁକି ?

ସରସ୍ୱତୀ - ସିଏ ମାଗିଲେ ଯାଇଁ କି ଦେବ ।

ବାବୁଲ - (ନାକରେ କାନ୍ଦି) ଦୋଉନ (ହାତ ବଢ଼େଇଲା)

ସରସ୍ୱତୀ - ନେ ।

[ବାବୁଲ ଦଶ ପଇସିଟାକୁ ମୁଠେଇ ଧରି ଧାଇଁ ଧାଇଁ ବାହାରକୁ ପଳେଇଲା।)

ସରସ୍ୱତୀ - ବୋଉ ! ତୁ ନରହରି ମହାପାତ୍ରଙ୍କୁ ଡକେଇ ଥିଲୁ ନା ସେ ମନକୁ ଆସିଥିଲେ ?

ସରବୋଉ - ମୁଁ କାହା ଘ କୁ ଯିବା ତୁ ଦେଖିଚୁ ?

ସରସ୍ୱତୀ - ଏତେ କଥାରୁ କ'ଣ ମିଳିବ ? ମୁଁ ତଟେତ ପଚାରୁଚି କ'ଣ ତୁ ମତେ କହୁଚୁ କ'ଣ ? ତୁ ତାଙ୍କୁ ଡ଼କେଇ ଥିଲୁକି ?

ସରବୋଉ - ମୁଁ କାହିଁକି କାହାକୁ ଡ଼କେଇବିମ ?

ସରସ୍ୱତୀ - ତାଙ୍କୁ କିଏ କହୁଥିଲା ଉପରେ ପଡ଼ି ଏଠିକି ଆସି ତାଳିକା କରିବାକୁ ?

ସରବୋଉ - ତାଙ୍କୁ ପଚାରିଲୁ ନଇଁ ? ମୋ ଉପରେ ଏମିତ ତୋଡ଼ ଦେଖାଉଚୁ କାହିଁକି ?

ସରସ୍ୱତୀ - କାଇଁକି ? ମୁଁ କ'ଣ ହେଇ ଘରଭଙ୍ଗା ଟାଉଟର ଟାକୁ ଡ଼ରିଚକି ? ଆଉ ଥରେ ଆସିଲେ ମୁଁ ପଚାରିବି କି ନାଇଁ ତୁ ଦେଖିବୁ ।

ସରବୋଉ - ସାଇ ଭାଇଏ ଗୋଟିଏ ହେଲେ କେହୁ ବାହାରଲେ ନେଇଁ । ସେଇ ନରହର ମହାପାତ୍ର ବୁଝାସୁଝା କଲାରୁ ଯାଇ ଯାଇ ଭାଇଏ ତୋ ବାପାର ଶବକୁ ଉଠାଇଲେ । ବିପଦବେଳେ ଯିଏ ସାହା ହେଉଚ ମୁଁ ତା କଥା ନଶୁଣିବ କେମିତ ?

ସରସ୍ୱତୀ - ହଁ, ତାର କଥା ..., ଖୁବ୍ ମନ ଲଗେଇ ଶୁଣ । ଏମିତ ଶୁଣୁଶୁଣୁ ଦିନେ ଶୁଣିବୁ ଆମ ଜମି ବାଡ଼ି, ଘରଦ୍ୱାର ସବୁ ସେ ନରହର ମହାପାତ୍ର ନିଲାମ ଧରଚ ।

ସରବୋଉ - ଅଉ କାହା କଥା ଶୁଣିବ ?

ସରସ୍ୱତୀ - ଆମର କାହା କଥା ଶୁଣିବା ଦରକାର ନାହିଁ ।

ସରବୋଉ - ତୋ ମୁଣ୍ଡ କ'ଣ ଖରାପ ହେଇଗଲାଣି ?

ସରସ୍ୱତୀ - ଯୋଉ ଜମି ଦି'ମାଣ ଆମର ସାହା ଭରସା ତାକୁ ଯଦି ନରୀ ମହାପାତ୍ର ନାଆଁରେ ତୁ ଲେଖିଦବୁ ତେବେ ଏକା ମୋ ମୁଣ୍ଡ କାହିଁକ ମୋ ସାଙ୍ଗରେ ତୋର ମୁଣ୍ଡବ ଖରାପ ହେଇଯିବ ।

ସରବୋଉ - କାହାର କଥାତ ଶୁଣିବ ନେଇଁ, କାହାକୁତ ଡ଼ାକିବ ନେଇଁ, ତୋ ବାପାଙ୍କ କାମ ହବ କେମିତ ?

ସରସ୍ୱତୀ - କେହୁ କାହା କାମ କରିଦିଏ ନାହିଁ ।

ସରବୋଉ - ମୋର ତ ବଡ଼ ପୁଅ ନାହିଁ, ନେଇ ଆଣି କାମ କରିବ କିଏ ? ମୁଁ ମାଇପି ଲୋକ କେମିତ କରିବ ?

ସରସ୍ୱତୀ -ଆମର ଏତେ ଆଡ଼ମ୍ବର କରିବାର କ'ଣ ଅଛି ?
ଏଟା କ'ଣ ପୁଅ ବାହାଘର ?

ସରବୋଉ - ପୁରୋହିତ କହୁଥିଲେ ଏଇଟା ହେଉଛି ସବୁଠୁ
କମ୍ ଖରଚର ତାଲିକା ।

ସରସ୍ୱତୀ -କମ୍ ଖର୍ଚ୍ଚ ? ଯୋଉ ତାଲିକାରେ ଲୁଗାପଟା
ଦି' ହଜାରରେ ଟଙ୍କା ସାଇ ଖଇ ଓ ବ୍ରାହ୍ମଣ
ଭୋଜନ ତିନି ହଜାର ଟଙ୍କା, ତାକୁ କହୁଛୁ
କମ୍ ଖର୍ଚ୍ଚ ବୋଲି ?

ସରବୋଉ - ଆଉ କେମିତି ହେବ ?

ସରସ୍ୱତୀ - ଲୁଗା କିଣିବାକୁ ଆମର ପଇସା ନାହିଁ । ଖଣ୍ଡେ
ଲୁଗା ଯୋଉଠି ଦରକାର ସେଠି ଖଣ୍ଡେ ସୁତା
ଦେଇ ଚଳେଇ ଦବା ।

ସରବୋଉ - ବ୍ରାହ୍ମଣ ଭୋଜନ ଆଉ ଜ୍ଞାତି ଭୋଜନ ?

ସରସ୍ୱତୀ - ଯାହା ଘରେ ସିନା ଖାଇବାକୁ ଅଛି ସିଏ ଭୋଜି
ଦବ । ଆମ ଘରେ କ'ଣ ଅଛି ? ଚାଉଳ ନାହିଁ
ବୋଲି କାଲିଠଉଁ ଭାତ ରନ୍ଧା ହେଇନାହିଁ ।

ସରବୋଉ - (କାନ୍ଦି କାନ୍ଦି) ସର !

ସରସ୍ୱତୀ - ଆଉ ଜମି, ବାଡ଼ି, ଘର ବନ୍ଧା ପକେଇ ଟଙ୍କା
କରଜ ଆଣି ଦଶେ ଗାଆଁ ବାଲାଙ୍କୁ ଖାଇବାକୁ
ଦେଇ, ସବୁ ଦିନ ଘର ଘର ବୁଲି ନିଜ ପାଇଁ, ନିଜ
ଛୁଆଙ୍କ ପାଇଁ ଭିକ ମାଗିବୁ ?

ସରବୋଉ - ତାଙ୍କ କାମଟା ଏମିତି ଅନାଦନା ଭାବରେ
କଲେ ତୋ ବାପା ସରଗରେ ଥାଇ କ'ଣ
ଭାବିବେ ?

ସରସ୍ୱତୀ - ମୁଁ ତ ସେଇ କଥା କହୁଚି ଯଦି ସବୁଗ ବୋଲି ସତରେ କିଛି ଥାଏ, ଯଦି ମୋ ବାପା ସେଠି ଥାଆନ୍ତି, ତେବେ ସେ ନରହରି ମହାପାତ୍ରର କାରସାଦି ଦେଖି ଦାନ୍ତ କାମୁଡ଼ୁଥିବେ । ତାଙ୍କ ଛୁଆଙ୍କ ପାଟିରୁ ଆହାର ଛଡ଼େଇ ଅନ୍ୟମାନଙ୍କୁ ପେଟପୂରା ଖାଇବାକୁ ଦେବାରେ ସେ ଖୁବ୍ ଦୁଃଖୀ କରିବେ ।

ସରବୋଉ - ତୁ କ'ଣ କହୁଚୁ ତୋ ବାପାଙ୍କ ଶୁଦ୍ଧିକାମ ହବନି ?

ସରସ୍ୱତୀ - ମୁଁ ସେ କଥା କେତେବେଳେ କହିଲି ?

ସରବୋଉ - ଲୁଗାପଟା କଣା ହବ ନେଇଁ, ବ୍ରାହ୍ମଣ ଭୋଜନ କି ଜ୍ଞାତି ଭୋଜନ ହବ ନେଇଁ ଆଉ ଶୁଦ୍ଧି କାମ ହବ କେମିତି ?

ସରସ୍ୱତୀ - ନୂଆ ଲୁଗା ପିନ୍ଧିବା ଆଉ ଭାତ ଖାଇବାର ଶୁଦ୍ଧିକାମ ସହିତ କିଛି ସମ୍ପର୍କ ନାହିଁ । ଏ ଦୁଇ କାମକୁ ଛାଡ଼ି ଆଉ ଯାହା ଦରକାର ଆମେ ସବୁ କରିବା ।

ସରବୋଉ - ଆଉ କ'ଣ ଦରକାର ?

ସରସ୍ୱତୀ - ମୁଁ କେମିତି ଜାଣିଲି ?

ସରବୋଉ - ଆଉ କିଏ ଜାଣିବ ?

ସରସ୍ୱତୀ - ସେଇ ପୁରୋହିତଙ୍କୁ ଡକା ସେ କୁହନ୍ତୁ ।

ସରବୋଉ - ଏମିତି ଶୁଦ୍ଧି କାମ କରି କେତେ ନକରି କେତେ ?

ସରସ୍ୱତୀ - କାଇଁକି ? କ'ଣ ହେଲା କି ?

ସରବୋଉ - ଏମିତିଆ କାମତ ମୁଁ କୋଉଠି ଦେଖିନେଇଁ ।

ସରସ୍ୱତୀ - ଘର ଭିତରର ବସି ବାହାରେ କ'ଣ ହଉଚ ନ ହଉଚ ତୁ ଜାଣିବୁ କେମିତି ?

ସରବୋଉ - ଏମିତ କାମ କରିବାକୁ ସୁବେଦାରଙ୍କ ଘଜ ହେବେ ନେଇଁ ।

ସରସ୍ୱତୀ - ସଏ କ'ଣ ପାଇବେ ଆମେ ଅମର ନୂଆ ଲୁଗା ପିନ୍ଧିଲୁ କ ପୁରୁଣା ଲୁଗା ପିନ୍ଧିଲୁ । ଆମେ ଖିରିପୁରୀ ଜଣ ଖାଇଲୁକି ଖାଲି ପାଣି ପିଇ ରହିଲୁ ?

ସରବୋଉ - ଯୋଉଷ୍ଟା ବନ୍ଧନା, ତୁ କହଦେଲେ ହବ ?

ସରସ୍ୱତୀ - ହବୁ ସେଇ ବାଧି ଭିତରେ ଅଛି ବୋଉ । ନୂଆ ଲୁଗା କାଶାରେ ନୂଆ ସୂତାରେ ଟଁଲେଇ ହବ । ବଡ଼ ଲୋକଙ୍କ ଢ଼ଙ୍ଗ ଦେଖେଇ ସମସ୍ତଙ୍କୁ, ନୂଆ ଲୁଗା ପିନ୍ଧେଇ, ଭୁରି ଭୋଜନ ଦେଇ ଆମ ଘର ଦ୍ୱାର, ଜମି ବାଡ଼ି ବନ୍ଧକ କଲେ ଆମେ ଦାଣ୍ଡର ଭିକାରୀ ହେବା ।

ସରବୋଉ - ମୁଁ ଏତେ ସବୁ କଥା ଜାଣିନେଇଁ । ଯେମିତ ସମସ୍ତଙ୍କ କାମ ହୁଏ ତୋ ବାପଙ୍କ କାମ ସେମିତି ହବ ।

ସରସ୍ୱତୀ - ଟଙ୍କା କୋଉଠୁ ଆଣିଲୁ ?

ସରବୋଉ - ତୁ ସେଥିରୁ କ'ଣ ପାଇବୁ ?

ସରସ୍ୱତୀ - ଆମ ଘରେ କାହିଁକି ନର ମହାପାତ୍ରେ ପାଞ୍ଚ ହଜାର ଟଙ୍କା ଖର୍ଚ୍ଚ କରିବେ ? ଯୋଉ ବୁଢ଼ା ନିଜ ପୁଅ ବୋହୂକୁ ହାତ ଟେକାରେ ରଖିଚ, ଅନେକ ଗରିବ ଲୋକଙ୍କ ଜମି, ବାଡ଼ି, ସୁନା, ରୁପା ବନ୍ଧାରଖି ସେମାନଙ୍କ ଘରେ କଲାକନା

ବୁଲେଇ ଦଇଚ, ତୁ ତାର କଥା କେମିତି ବିଶ୍ୱାସ କରୁଚ୍ ?

ସରବୋଉ   କାମତ ଆମର, ଆମକୁ ସମସ୍ତଙ୍କ କଥା ବିଶ୍ୱାସ କରିବାକୁ ହବ ।

ସରସ୍ୱତୀ - ବାପାତ ଗଲେ ତୁ କ'ଣ ତାଙ୍କ ପଛେ ପଛେ ଆଉ ଉଣ୍ଡିଚେପି ତାଙ୍କର ପାଖକୁ ଆମକୁ ପଠେଇ ଦବୁ ?

ସରବୋଉ - ଆଉ ତୁ କ'ଣ କହୁଚୁ ଧନ ଖରଚ ହବ ବୋଲି ତୋ ବାପାଙ୍କର ଶୁଦ୍ଧି କାମ ହବନେଇଁ ?

ସରସ୍ୱତୀ - ମୁଁ ସେ କଥା ଜମା କହୁନେଇଁ ।

ସରବୋଉ - ଆଉ ତୁ କ'ଣ କହୁଚୁ ?

ସରସ୍ୱତୀ - ଆମ ଅବସ୍ଥାକୁ ଚାହିଁ ଆମେ ଯେତିକି ପାରିବା ସେତିକି କରିବା ।

ସରବୋଉ - ତୁ ଯେମିତି କହିବୁ ସେମିତି ହବନା, ପୁରୋହିତ ଯେମିତି କହିବେ ସେମିତି ହବ ?

ସରସ୍ୱତୀ - ଆମେ ଯେମିତି କହିବା ପୁରୋହିତ ସେମିତି କରିବେ ।

ସରବୋଉ - ମୁଁ ତୋ ସାଙ୍ଗରେ ଏତେ ଫଁଟରେଇ ହେଇ ପାରିବି ନେଇଁ । (ରାଗରେ ଦମ୍ ଦମ୍ ହୋଇ ଚାଲିଗଲେ ସରବୋଉ । ସରସ୍ୱତୀତାଙ୍କ ଯିବା ବାଟକୁ ଫାଙ୍କା ଦୃଷ୍ଟିରେ ଚାହିଁ ଥିଲା । )



## ତୃତୀୟ ଦୃଶ୍ୟ

[ ସନିଆଁର ଘର । ସରବୋଉ ଘର ଓଳୋଉଥିଲେ । ]

ସରବୋଉ - (ଆସନ ଖଣ୍ଡେ ପକାଇ ଦେଉ, ଦେଉ) କୁଆଡ଼େ କେମିତି ଆସିଲେ ?

ନରହର - (ବସୁ ବସୁ) ନାଇଁ, ଏମିତି ଟିକେ ବୁଲି ଆସିଲି । ଆଉ ସବୁ ଖବର କ'ଣ ସନିଆର କାମଟା ଯେମିତି ହେଲା ତମ ମନକୁ ଗଲାତ ?

ସରବୋଉ - ଆପଣଙ୍କର ଋଣ ମୁଁ ଏ ଜୀବନରେ ଶୁଝି ପାରିବି ନେଇଁ । ଆର ଜନମରେ ଆପଣଙ୍କ ବାଇଶଣ କି ଲଙ୍କାମରିଚ ହେଇ ଫଳିବି ।

ନରହର - ଏସବୁ ସେଇ ଉପରବାଲାର କାମ । ଏଥିରେ ତମର କିଛି ନାହିଁ କି ମୋର କିଛି ନାହିଁ । ମୁଁ କେବଳ ଖୁସି ଯେ ସନିଆର କାମଟା ଶୁକ୍ ଭଲରେ ହୋଇଗଲା ।

ସରବୋଉ - ସବୁ ଆପଣଙ୍କ ଦୟାରୁ ।

ନରହର - ସମୁଦାୟ କେତେ ଟଙ୍କା ଖର୍ଚ୍ଚ ହେଲା ତମକୁ ମୋର ବୁଝେଇଦବା କଥା । ସବୁ କଥା ମୁଁ ଟିକି ନିଖି କରି ଟିପିଛି । (କାଗଜ ବାହାର କଲେ ।)

ସରବୋଉ - ମୁଁ କ'ଣ ଅବିଶ୍ବାସ କରୁଛି ?

ନରହର - ଯେତେହେଲେ ହିସାବଟା ଥରେ ଦେଖିବା କଥା

ସରବୋଉ - ମୁଁ ହିସାବ ଦେଖି କ'ଣ କରିବି ? ଖର୍ଚ୍ଚ

କେତେ ହେଇଚ କ'ଣ କାମରୁ ଜଣା ପଡ଼ିଲା ନେଇଁ ?

ନରହର - ତେବେ ମୋ ଖରଚଟା ଜାଣିଥା । ସବୁ ମିଶ ପାଞ୍ଚ ହଜାର ଛଅ ଶହ, ପଞ୍ଚାଅଶି ଟଙ୍କା ପନ୍ଦର ପଇସା ।

ସରବୋଉ - ହେଇଥିବ । ଆପଣତ ସବୁ ଦେଇଛନ୍ତି, ମୋର ଏ ସବୁ ବୁଝିବାର କ'ଣ ଦରକାର ?

ନରହର - ହଉ ଛାଡ଼ ସେ କଥା । ସକାଳୁ ଚୁଡ଼ା ଦ'ଟା ଖାଇ ଦେଇଚ ଯେ ଦନମାନ ପାଣି ପିଇ ପିଇ ମଲିଣି । ସରବୋଉ ସରକୁ ଡ଼ାକଲ ମନ୍ଦେ ପାଣି ଆଣୁ ।

ସରବୋଉ - ସର ! ସରଲୋ !

ସରସ୍ୱତୀ - (ଘର ଭିତରୁ) କ'ଣ ବୋଉ ?

ସରବୋଉ - ମଉସାଙ୍କ ପେଇଁ ପାଣି ଗିଲାସେ ଆଣ ତ ମାଆ ।

ସରସ୍ୱତୀ - ନୋଉଚ ବୋଉ (ଘର ଭିତରୁ)

ନରହର - ଇଏତ ଗୋଟେ କାମ ସଇଲା । ଆଉ କାମଟା କେବେ କରୁଚ ?

ସରବୋଉ - ଆଉ କୋଉ କାମ ?

ନରହର - ସରକୁ କେତେ ବର୍ଷ ହେଲା ?

ସରବୋଉ - [ଦୀର୍ଘ ନିଶ୍ୱାସ ମାରି] ସତର ପୂରି ଅଠର ଚାଲିଲା । (ଏତିକି ବେଳେ ସର ପାଣି ଗିଲାସେ ଧରି ଢ଼ଳି ଢ଼ଳି ଆସିଛି)

ନରହର - ଇଏତ ଗୋଟେ ଶକତ ବୋଝ । [ ସରସ୍ୱତୀକୁ ପାଦରୁ ମୁଣ୍ଡ ପର୍ଯ୍ୟନ୍ତ ଚାହିଁ ] ବାହାଘର ବୟସରେ କିଛି ବୁଝା ବୁଝି କଲଣି ?

[ ସରସ୍ୱତୀ ପାଣି ଗ୍ଲାସଟା ଧୁମ୍ କରି ଥୋଇ ଦେଇ ଚାଲିଗଲା । ]

ସରବୋଉ - ବୁଢ଼ିକା ଲୋକତ ଚାଲିଗଲା । ମୁଁ ଯାଇପି ଲୋକ ଛୋଟ ଝିଅ ଏ ଟାଙ୍କ ମୁହଁରେ ଆହାର ଦେବ ନା ତା' ପାଇଁ କାହାଘର ବୁଝିବ । ଘରେତ କାଣୀ କୋଉଡ଼ିଟାଏ ବି ନାହିଁ ।

ନରହରି - ମୁଁ ଗୋଟେ କାଗା କହିବ କରିବ ?

ସରବୋଉ - ହଁଅ କାହାଘର କ'ଣ କଥାରେ ପାଖରେ ପଡ଼ିଚ ? ଆଜ କାଲି ଜାନ ଯୋଉତୁକ ଯାହା ହେଲଣି ସେଥିରେ ଥିଲାବାଲାଙ୍କର ସାହାସ କୁଳୋଉ ନେଇଁ ।ଖାଲି ହାତଟାରେ ମୁଁ ଅଲଣା ସାହାସ କରିବି କେମିତି ?

ନରହରି - ଡବା, ନବା ପାଇଁ ଭୟ କରନା । ସେ ସବୁ କିଛି ପଡ଼ିବ ନେଇଁ । ଆଉ ଯାହା ସାମାନ୍ୟ କିଛି ପଡ଼ିବ ମୁଁ ତାର ବ୍ୟବସ୍ଥା କରିବ । ତମେ ଖାଲି ରାଜି ହେଲେ ହେଲା ।

ସରବୋଉ - ପିଲାଟି ଦେଖିବାକୁ କେମିତିଆ ?

ନରହରି - ଖୁବ୍ ଭଲ ।

ସରବୋଉ - ଆମ୍ ଗାଁରେ କାହାନେଖେ ହେବ ?

ନରହରି - ଆମ ଗାଁରେ ·····ହଁ· ମୋ ରଙ୍ଗ, ମୋ ଉଚ୍ଚ, ମୋ ମୋଟା ଆଉ ମୋରି ମୋଉଡ଼ ।

ସରବୋଉ - ତେବେ କାହାପରି ହବ ?

ନରହରି - ( ଟିକେ ଭାବି) ଏଇଧରି ମୋ ପରି ।

ସରବୋଉ - ଆପଣଙ୍କ ପରି ?

ନରହରି - ନାଇଁ, ମାନେ, ହଁ ଏଇ ଧରି···

ସରବୋଉ - କେଉଁ ଗାଆଁରେ ? କାହାଘର ?

ନରହରି - ବେଶୀ ଦୂର ନୁହେଁ ଏଇ ଆମ ଗାଆଁରେ ।

ସରବୋଉ - କାହାଘର ?

ନରହରି - ମୋ ଘର ।

ସରବୋଉ - ଅଃଛା କରୁ ନାହାନ୍ତି ତ ?

ନରହରି - ଅଃଛା ପୁଣି ତମ ସାଙ୍ଗରେ ?

ସରବୋଉ - ମୋର କ'ଣ ଏଡେ ଭାଗ୍ୟ ହବ, ଆପଣଙ୍କ ଘରକୁ ମୋ ଝିଅ ବୋହୂ ହୋଇ ଯିବ ?

ନରହରି - ଏଥିରେ ଅବିଶ୍ୱାସ କରିବାରେ କ'ଣ ଅଛି ? ମୁଁ ଯେତେବେଳେ କହୁଚି ଏଥିରେ ଆଉ କିଏ ବାଧା ଦେବ ? ତମେତ ଦେଖୁଚ ସନିଆର ଶୁଦ୍ଧି କାମ ନକରିବା ପାଇଁ ସାଇବାଲା ଏକଜୁଟ ହୋଇ ମତେ କହିଲେ ମୁଁ କ'ଣ ତାଙ୍କ କଥା ଶୁଣିଲି ?

ସରବୋଉ - ଆପଣଙ୍କ ସାନ ପୁଅର ପାଠ ପଢା କ'ଣ ସରିଲାଣି ?

ନରହରି - ତାର ଆହୁରି ଦି' ବରଷ ବାକି ଅଛି ।

ସରବୋଉ - ସିଏ କ'ଣ ଏ ବାହାଘରରେ ରାଜି ? ·

ନରହରି - ତା ରାଜି ଅରାଜିରେ କ'ଣ ଅଛି ?

ସରବୋଉ - ତାହେଲେ ବାହାଘର କେମିତି ହବ ?

ନରହରି - ଯେମିତି ହୁଏ ସେମିତି ହବ ।

ସରବୋଉ - ଯିଏ ବାହାହବ ସିଏ ରାଜି ନହେଲେ ବାହାଘର ହବ କେମିତି ?

ନରହରି - ବାହାହବା ଲୋକ ରାଜି । ତମେ ଘରକୁ ରାଜି କରାଅ । ସିଏ ସାରା ଜୀବନ ସୁଖରେ ରହିବ ।

ସରବୋଉ - ଏ ବାହାଘର କେବେ ଆପଣଙ୍କ ସାନପୁଅ ବିଷୟରେ ନୁହେଁ ? ଆଉ କାହା କଥା କହୁଛନ୍ତି ?

ନରହର - ସରଟିକ ମତେ ଦିଅ ସରବୋଉ । ମୁଁ ତାକୁ ସୁନା କଣ୍ଢେଇଟିଏ ପରି ସଜେଇ ରଖିବି । ତୁମ ମୁଣ୍ଡର ବୋଝ ଯିବ । ମୋ ଘରଟା ସଜାଡ଼ି ହେଇଯିବ ।

ସରବୋଉ - ଆପଣ ଏ ସବୁ କ'ଣ କହୁଛନ୍ତି ? ଆପଣଙ୍କ ମୁଣ୍ଡ ଠିକ୍ ଅଛି ତ ?

ନରହର - କ'ଣ ଏମିତି ଭୁଲ କଥାଟେ କହିଦେଲି ? ମୋ ଘରେ ତମ ଝିଅ କ'ଣ ସୁଖରେ ରହିବ ନେଇଁ ? ତମେ ଆଉ ତମ ପିଲାମାନେ ସମସ୍ତେ ସୁଖରେ ରହିବ । ସମସ୍ତଙ୍କର ଦାୟିତ୍ୱ ମୁଁ ନେବି ।

ସରବୋଉ - ଏମିତି ଅଲାଜୁକ ଭାବରେ କେମିତି କହି ପାରୁଛ ? ମୋର ଅଠର ବରଷର ଝିଅକୁ ଷାଠିଏ ବରଷର ବୁଢା ଗଳାରେ ମୁଁ ଗଳେଇ ଦେବି ? ତା'ଠୁ ଭଲ ଗଳାଚିପି ନଈ କି ପୋଖରୀରେ ପକେଇ ଦବାଟା ।

ନରହର - ଘରେତ ତମର କିଛି ନାହିଁ । ଝିଅଟା ଖଣ୍ଡେରେ ବଢା ହୋଇ ବୁଢ଼ୀ ହେବ । ଯୋଉ ଜମି ଦି'ମାଣ ଥିଲା ତାକୁ ତମେ ସନଆଁ ଶୁଦ୍ଧି ପାଇଁ ବନ୍ଧକ ପକେଇ ଦେଇଚ । ତମେ ଏଇଲେ ଚଳିବ କେମିତି ? ଖାଇବ କ'ଣ

ସରବୋଉ - ଜମି ବାଡ଼ିତ ମୁଁ ବନ୍ଧା ଦେଇନେଇଁ ।

ନରହର - ଆଉ ମୁଁ ଯୋଉ ପାଞ୍ଚ ହଜାର ଟଙ୍କା ଖର୍ଚ୍ଚ କଲି ? ସେଗୁଡ଼ା କ'ଣ ତମ ବେଗରସ୍ତ ମୋ ଘରେ ଥାଉ ଯୋଉ ଥିଲି ?

ସରବୋଉ - ଆପଣଙ୍କର କେଉଁଟା ମୁହଁ କି ମନ୍ତେ ପଶ୍ର କଇଥିଲେ ଲୋକଙ୍କ ମୁହଁ କେବଳ ବନ୍ଦ କରିବାକୁ ବନ୍ଧକ ତମସୁକ ନେଖେଇ ନଉଛ ଜମି ବାଡ଼ିରେ ତମେ ଯେମିତ ଚଳୁଚ ସେମିତ ଚଳିବ ।

ନରହର - ହଁ, କହିଥିଲି । ସେତେବେଳେ ତମେ ମୋ କଥା ମାନୁଥିଲ ମୁଁ ତୁମକୁ ଏ କଥା କହିଥିଲି ।

ସରବୋଉ - ଏଇ ତା ହେଲେ ଆପଣଙ୍କର ଅସଲ ରୂପ ?

ନରହର - ମୋର ଶେଷ କଥା ତମେ ଯଦି ମୋ ହାତରେ ସରକୁ ନଦିଅ ତେବେ ଏ ଜମିବାଡ଼ି ଘର ଦ୍ୱାର ସବୁଥିରୁ ମୁଁ ତମକୁ ବେଦଖଲ କରିବ । ତମେ ଦାଣ୍ଡରେ ଭିକ ମାଗିବ ।

ସରବୋଉ - ମୋର ସର୍ବନାଶ କରିବାକୁ ଆପଣ ମୋ ଗୃହପଟେ ଜାଲ ବୁଣିଛନ୍ତି । ମୋର ଭଗବାନ ଭରଷା ।

ନରହର - ସତେ ଯେମିତି ଭଗବାନ ସ୍ୱାଙ୍କର ଚାକର ଏଇ ନିଅ ତମ କାଗଜପତ୍ର ଦେଖ । ମତେ ମୋ ଟଙ୍କା ଆଜରେ ‹ଇଲେ, ଦିଅ ।

ସରବୋଉ - ଏଇଲେ, ଏତେ ଟଙ୍କା ମୁଁ କୋଉଠୁ ଆଣିବ ? ମତେ ବର୍ଷେ, ଛ ମାସ ସମୟ ଦିଅ । ମୁଁ ଆଜ କାହାଠୁ ଆଣି ଆପଣଙ୍କୁ ଦେବ ।

ନରହରି - ଝିଅଙ୍କୁ ମାସକୁ ଦଶ ପଇସା ହିସାବରେ ସୁଧ ପଡ଼ିବ । ବରଷ ଶେଷାକରେ ସୁଧ ମୂଳକୁ ବଢ଼ିଲଇଯିବ । ସୁଧ ମୂଳ ମିଶିଲେ ଯାହାହବ ତମ ଜମି, ବାଡ଼ି, ଘର, ଦ୍ୱାର ଏବଂ ତମ ଛୁଆପିଲାଙ୍କୁ ବିକ୍ରିକଲେ ବି ତାକୁ ପରିଶୋଧ କରି ପାରିବ ନେଇଁ ।

ସରବୋଉ - ମୁଁ ନିଆସିର ଲୋକ ବୋଲି ଆପଣ ମୋ ବେକରେ ଏ ଫାଶ ଗଳେଇଉଛନ୍ତି । ଭଗବାନ ସହିବେ ନେଇଁ ।

ସରସ୍ୱତୀ - [ହଠାତ୍ ପ୍ରବେଶ] ବୋଉ, ସିଏ ତ କିଛି ଭୁଲ କହୁ ନାହାଁନ୍ତି । ମୁଁ ତ ତତେ ମୂଳରୁ ସେଇ କଥା କହୁଥିଲି ।

ନରହରି - ମୁଁ ପରା କାଳେଣି ସର ପାଠ ପଢ଼ିଛି ତା' ବୁଦ୍ଧି କଅଁରା । ଭଲ ମନ୍ଦ ବିଚାର କରିବାର ବୁଦ୍ଧି ତାର ଅଛି ।

ସରବୋଉ - (କାନ୍ଦି କାନ୍ଦି) ତୁ ସିଆଡକୁ ଯାଆ ସର ।

ସରସ୍ୱତୀ - ମୁଁ ସବୁ ଶୁଣିଚି ବୋଉ । ତୁ କାହିଁକି ମିଛଟାରେ କଥା ବଢ଼ାଉଛୁ ?

ସରବୋଉ - ତୁ ଯା କହୁଚି । [ରାଗରେ ଚିତ୍କାର କରି]

ନରହରି - ସିଏ ତ ଠିକ୍ କହୁଚି । ତାକୁ ତମେ ଏଠୁ ତଡ଼ ଦଉଚ କାହିଁକି

ସରସ୍ୱତୀ - ବୋଉ କଥାକୁ ଆପଣ କଣ ପାଇବେ ? ବାପା ଚାଲିଗଲା ପରଦିନଠାରୁ ଆଉ ତା ମୁଣ୍ଡ ଠିକ୍ ରହୁ ନାହିଁ ।

ସରବୋଉ - ସର ! (ପୁଣି ଚିତ୍କାର କରି ଉଠିଲେ)

ସରସ୍ୱତୀ - ମୁଁ ଆପଣଙ୍କ ପ୍ରସ୍ତାବରେ ରାଜି । ମୋ ହାତ,

ଭଉଣୀଙ୍କୁ ମଣିଷ କରିବା ପାଇଁ, ମୋ ବୋଉର ସୁବିଧା ପାଇଁ ମୁଁ ସବୁ କିଛି କରିବାକୁ ପ୍ରସ୍ତୁତ ।

ସରବୋଉ - ତୁ ଏ କ'ଣ କରିବାକୁ ଯାଉଛୁ ସର ?

ସରସ୍ୱତୀ - ମୁଁ ଯାହା କରୁଚି, ବୁଝିବିଚାରି କରୁଚି ।

ସରବୋଉ - (କାନ୍ଦି ଉଠିଲେ)

ନରହରି - ତମେ ଏମିତି ବ୍ୟସ୍ତ ହେଉଚ କାହିଁକି ? ତମ ଝିଅ ସବୁ ସମ୍ପତ୍ତିର ମାଲିକ ହବ । ତମ ଘର ବାଡ଼ି ଜମି ତମରି ହବ । (ବ୍ୟାଗରୁ ବାହାର କରି) ନେ ସର ତମ ବନ୍ଧକ ତମସୁକ । (ଅତି ଖୁସିରେ) ଏ ବନ୍ଧକ ତମସୁକ ତୁ ରଖ । ମୋର ଇଏ ଆଉ କ'ଣ ହବ ?

ସରସ୍ୱତୀ - (ବନ୍ଧକ ତମସୁକଟାକୁ ଚଟ୍ କରି ନେଇ ଯାଇ ଚିକି ଚିକି କରି ଚିରି ନରହରିବାବୁଙ୍କ ମୁହଁକୁ ଫିଙ୍ଗି ଦେଲି) ଆପଣ ଭାବନ୍ତି ନାହିଁ ଅନ୍ୟମାନେ ସମସ୍ତେ ବୋକା ଆଉ ଆପଣ ଏକା ଚାଲାକ୍ । (ଖଣ୍ଡ ଖଣ୍ଡ କରି କାଗଜ ମୁହଁକୁ ଫିଙ୍ଗି) ନିଅନ୍ତୁ ଆପଣଙ୍କ ଟଙ୍କା ନିଅନ୍ତୁ । ଶୀଘ୍ର ଏଠୁ ଯାଆନ୍ତୁ । ଆଉ ଦିନେ ଏଠିକି ଆସିବେ ନାହିଁ ।

ନରହରି - ଏ କ'ଣ କଲୁ ସର ? (ମନ ଦୁଃଖରେ)

ସରବୋଉ - ଯାହା କରିଚ ଠିକ୍ କରିଚ । ଯାଉଛୁନା ଛାଞ୍ଚୁଣୀ ପାହାର କସେଇବ ? (ଛାଞ୍ଚୁଣୀଧରି ଗୋଡ଼େଇଲେ । ନରହରି ଭୟରେ ପଳେଇଲେ । ଧୀରେ ଧୀରେ ମଞ୍ଚ ଅନ୍ଧକାର ହେଲା ।)

